# ଦ୍ୱିନାଥମେଳା ।

ଶ୍ରୀଶିବ ଚରଣ ଦାସଙ୍କ ଦ୍ୱାରା
ରଚିତ ଓ
ପ୍ରଥମବାର ପ୍ରକାଶିତ ।





ହରି ଓ ହର ।

Printed by M. Ch. Das.
AT THE MANOMOHAN PRESS,
4B CROUCH LANE,
CALCUTTA.
1923.

ଅତି ସୁଲଭ ମୂଲ୍ୟ ଟ ୦ / ମାତ୍ର ।

# ଦ୍ୱିନାଥମେଳା ।



## ( ବନ୍ଦନା )

ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଲାକୟା ।
ଚକ୍ଷୁରୁନ୍ମୀଲିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ॥
ବନ୍ଦେ ଗୁରୂ ନୀଶଭକ୍ତା ନୀଶମୀଶାବତାରକାନ୍ ।
ତତ୍ପ୍ରକାଶାଂଶ୍ଚ ତଚ୍ଛକ୍ତୀଃ କୃଷ୍ଣଚୈତନ୍ୟ ସଂଜ୍ଞକଂ ॥
ଗୁରୁରୂପଧରଂ ନିତ୍ୟଂ ଶ୍ରୀନନ୍ଦନନ୍ଦନଂ ହରିମ୍ ।
ବନ୍ଦେଽହଂ ପରୟା ଭକ୍ତ୍ୟା ଭକ୍ତବତ୍ସଲ ମୀଶ୍ୱରମ୍ ॥
ତଂ ବନ୍ଦେ ବୈଷ୍ଣବଗୁରୁଂ ପାଦାନନ୍ଦସୁଶୀତଳମ୍ ।
ଯତ୍ପ୍ରସାଦାତ୍ ମମାଜ୍ଞସ୍ୟ ଭକ୍ତିଶାସ୍ତ୍ର ବିଲୋକନମ୍ ॥
ବାଞ୍ଛାକଳ୍ପତରୁଭ୍ୟଶ୍ଚ କୃପାସିନ୍ଧୁଭ୍ୟ ଏବଚ ।
ପତିତାନାଂ ପାବନେଭ୍ୟୋ ବୈଷ୍ଣବେଭ୍ୟୋ ନମୋନମଃ
ଗୁରବେ ଗୌରଚନ୍ଦ୍ରାୟ ରାଧିକାୟୈ ତଦାଲୟେ ।
କୃଷ୍ଣାୟ କୃଷ୍ଣଭକ୍ତାୟ ତଦ୍ଭକ୍ତାୟ ନମୋନମଃ ॥
ମୂକଂ କରୋତି ବାଚାଳଂ ପଙ୍ଗୁଲଙ୍ଘୟତେ ଗିରିଂ ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ॥



ବନ୍ଦଇଁ ଦୈବତେ ମାଗୋ ଯେନ ତମୋ ମିନତି ।
ଦ୍ୱିନାଥ ଲୀଳା ଗାୟନେ ବଳାଇଛି ମନ ।
ମୂର୍ଖ ପଣେ,
ଏତେ ଦୁଃସାହସ କରିଅଛୁଁ ଅକାରଣେ ଗୋ । ୧ ।

ପଦ ଗ୍ରନ୍ଥି ନ ଜାଣେ ମୁଁ ନ ଜାଣଇ ଛନ୍ଦ ।
କବିତାକୁଞ୍ଜରେ ଭ୍ରମେ ଯେସନେକ ଅନ୍ଧ ।
[ ମା ଗୋ ] ଅଛୁ ଠାଣ,
ମୂର୍ଖ ହେଲେହେଁ ଜନନୀ ନ କରଇ ଆନ ଗୋ । ୨ ।
ବିଜେ କର ବୀଣାପାଣି ମୋହୃଦ ଆସନେ ।
କୃପାବଲୋକନେ ମାତ ଏହି ଅକିଞ୍ଚନେ ।
ଏ ଦପ୍ତିକ,
ସତେ କି ଗୁଣିବୁ ବାରେ ଜଗତ-ଜନନୀ ଗୋ । ୩ ।
ତୋ ସେବାରେ ମାତ ସ୍ଫୂର୍ତ୍ତି କରିଛୁ ବଞ୍ଚିତ ।
ଅଭାଜନ ଲଭିବାରେ କଲ୍ୟାଣ ଅମୃତ ।
[ନିଜ] କ୍ଷମାଗୁଣେ,
ଅକୃତୀ ପୁତ୍ର ଗୁହାରି ମାତା କି ନ ଶୁଣେ ଗୋ । ୪ ।



## ଗୀତ ।

ପୂର୍ବେ ପ୍ରିୟବ୍ରତ ମହୀପ । ପୃଥିବୀ କଲେ ସପ୍ତଦ୍ୱୀପ ॥
ଜମ୍ବୁ, ପ୍ଲକ୍ଷ, ଶାଲ୍ମଳୀ ଭିନ୍ନ । କୁଶ ଯେ କ୍ରୌଞ୍ଚ ପୁଣ ବୈନ ॥
ଶାକ ପୁଷ୍କର ଯେଣ ସପ୍ତ । ବିଭାଗ କଲେ ପ୍ରିୟବ୍ରତ ॥
ପୁତ୍ର ଅଗ୍ନିଧ୍ର ମହାମତି । ଜମ୍ବୁଦ୍ୱୀପେ ହେଲେ ନୃପତି ॥
ଜମ୍ବୁଦ୍ୱୀପକୁ ନବ ବର୍ଷେ । ବିଭକ୍ତ କଲେ ସେ ହରଷେ ॥
ନାଭି ତାହାଙ୍କ ଜ୍ୟେଷ୍ଠ ସୁତ । ତା ବର୍ଷ ନାଭି ନାମେ ଖ୍ୟାତ ॥
ନାଭିର ତନୟ ଋଷଭ । ପିତୃ ରାଜ୍ୟକୁ କଲେ ଲାଭ ॥
ଋଷଭ କୁମାର ଭରତ । ସଦ୍‌ଗୁଣଶାଳୀ ପୁଣ୍ୟବନ୍ତ ॥
ଯୋଗବଳରେ ଏ ରାଜନ । ବହୁ ସିଦ୍ଧି କଲେ ଅର୍ଜନ ॥
ଏହାଙ୍କ ନାମେ ନାଭି ବର୍ଷ । ହୋଇଲା ଭାରତ ବରଷ ॥
ସେ ଦେଶେ ଯେତେକ ନଗର । ଏକକୁ ଆର ପଟାନ୍ତର ॥
କୃଷି ବାଣିଜ୍ୟ ସୂକ୍ଷ୍ମ ଶିଳ୍ପ । ବ୍ୟବହାର ନୁହେ ଅଳପ ॥

ବାରାଣସୀ ନାମେକ ତୀର୍ଥ । ଯହିଁ ଅନେକ ସିଦ୍ଧ ପୀଠ ॥
ହର ଗୌରୀଙ୍କ ପୂଜା ତହିଁ । ନିତ ପ୍ରତି ଲାଗି ଅଛଇ ॥
ସେ ସ୍ଥାନ ନାମ ଶିବ କାଶୀ । ଲୋକରେ ଖ୍ୟାତ ବାରାଣସୀ ॥
ସେ ଦେଶେ ଏକ ସୌଦାଗର । ନାମ ତାହାର ପ୍ରଭାକର ॥
ତା ପତ୍ନୀ ନାମଟି ଉର୍ମିଳା । ପାଇଛି ଦ୍ୱିବା ଲକ୍ଷ୍ମୀ କଳା ॥
ପଦ୍ମିନୀ କନ୍ୟା ପିକଭାଷୀ । ବଚନେ ଅମୃତ ବରଷି ॥
ମର୍ତ୍ତ୍ୟରେ ତାର ରୂପ ସୀମା । ଦେବାକୁ ନାହିଁ ତ ଉପମା ॥
ଗୁରୁଜନଙ୍କ ପାଦ ସେବା । ପୂଜଇ ନିତ୍ୟ ଦେବ ଦେବା ॥
ସ୍ୱାମୀ ଚରଣେ ସଦା ଭକ୍ତି । ଦିଏ ଅତିଥି ଯଥା ଶକ୍ତି ॥
ପ୍ରଭାକର ସେ ସୌଦାଗର । ମୁଲୁପ ହଜାର ହଜାର ॥
ବାଣିଜ୍ୟ କରେ ଦେଶେ ଦେଶେ । ଧନ ଉପାର୍ଜ୍ଜନ ଉଦ୍ଦେଶ୍ୟେ ॥
ସମ୍ପତ୍ତି ତାର ସୀମା ନାହିଁ । ଭଣ୍ଡାର ଉଛୁଳି ପଡ଼ଇ ॥
ହୀରା, ନୀଳା, ମୋତି ମାଣିକ୍ୟ । ଭଣ୍ଡାରେ ଅଛଇ ଅସଂଖ୍ୟ ॥
ଦେବତା ସେବା ସଦାବ୍ରତ । ଘରେ ଲାଗିଛି ଅବିରତ ॥
ଘୋଡ଼ା ହାତୀ ଯେ ଓଟ କେତେ । ସଂଖ୍ୟା ନ ହେବ କଦାଚିତେ ॥
ଖୋଇବା ଖାଇବା ଲାଗିଛି । ଗହଳେ ମନ୍ଦିର ପୂରିଛି ॥
ଚର୍ବ୍ୟ ଚୋଷ୍ୟ ଯେ ଲେହ୍ୟ ପେୟ । ଯେତେ ପ୍ରକାରେ ଆହାରୀୟ ॥
ପୂର୍ଣ୍ଣ ହୋଇଛି ଭଣ୍ଡାରରେ । ଯା ଇଚ୍ଛା ଯେତେ ଖାଇ ପାରେ ॥
ମିଷ୍ଟାନ୍ନେ ବ୍ରାହ୍ମଣ ଭୋଜନ । ଲାଗି ରହିଛି ପ୍ରତିଦିନ ॥
କ୍ଷିରି କାକରା ପୁରି ପିଠା । ଆମାଲୁ ଖିରିସା ଚକଟା ॥
ମିଷ୍ଟାନ୍ନି କେତେ ଯେ ପ୍ରକାର । କେ କହି ପାରେ ସମାଗ୍ରର ॥
ସ୍ୱାଦ ପରିବର୍ତ୍ତନ ପାଇଁ । କେତେ ଜାତି ଆଚାର ଛଇଁ ॥
ଆମ୍ବ ଜାମ୍ବୁ ପୁଣି ଜମ୍ବିର । ସର୍କରା ପାକେ ଜର ଜର ॥
ଆଘ୍ରାଣ ମହକି ପଡ଼ଇ । ଦର୍ଶନେ ଜିହ୍ୱା ଲାଳସଇ ॥
ବୈଷ୍ଣବ ସେବା ଅର୍ଥେ ଖଞ୍ଜା । ପେଡ଼ା ବରଫି ଖଜା ଗଜା ॥
ରାବିଡି ମଧୁରୁଚି ଜାଣ । କେତେ ଯତନେ ତ ଆଣ ॥
ବୈଷ୍ଣବେ ଆଉ ଧାଉ ତହିଁ । ଜୟ ଫେରାନ୍ତି ହସ ହସ ॥

ପ୍ରସାଦ ପାଇ ଦେଉଛି ତୋଷ । ଦକ୍ଷିଣା ତହିଁରୁ ବିଶେଷ ॥
ନାନାପ୍ରକାର ସୌଦାଗରି । ହିସାବ ଆୟ ବ୍ୟୟ କରି ॥
କର୍ମଚାରୀ ଯେ ଶତ ଶତ । ଲେଖା ପଢ଼ିରେ ସଦା ବ୍ୟସ୍ତ ॥
ରାଜଧାନୀର କାର୍ଯ୍ୟ ପରି । ଲାଗିଛି ଦିବସ ସର୍ବରୀ ॥
କେବା ନେଉଛି କେତେ ବିଧ । ତହିଁରେ କଳ୍ପନା ତ ନାହିଁ ॥
ଥିଲେହେଁ ଏପରି ବୈଭବ । ଚିତ୍ତେ ନ ଥାଏ ସୁଖ ଭାର ॥
ତା ପତ୍ନୀ ପତିଠାରୁ ଦୁଃଖୀ । ବିଷର୍ଣ୍ଣ ବଦନା ଅସୁଖୀ ॥
ସନ୍ତାନ ସନ୍ତତି ବିହୀନ । ଚିନ୍ତିତ ଥାଏ ରାତ୍ର ଦିନ ॥
ଏକଦା ଦମ୍ପତି ବସିଲେ । ଚିନ୍ତାରେ ମଗନ ହୋଇଲେ ॥
ଅଧା ବୟସ ଆସି ହେଲା । ତଥାପି ପୁତ୍ର ନ ଜନ୍ମିଲା ॥
ନ ଦେଖି ପୁତ୍ରର ବଦନ । ପୁନାମ ନରକରେ ସ୍ଥାନ ॥
ପିତୃ ଋଣରେ ହେଲୁ ଋଣୀ । ଭାବନ୍ତି ପ୍ରଭାକର ପୁଣି ॥
ଚିନ୍ତାରେ ଚିତ୍ତ ଛନ ଛନ । ବୈଭବରେ ନ ଲାଗୁଇଁ ମନ ॥
ଏକଦା ରାତ୍ରୀ ଶେଷ ଯାମେ । ମନ ନ ଲାଗେ ନିଜ ଧାମେ ॥
ପଲ୍ୟଙ୍କୁ ଆସି ବସେ ତଳେ । ନୟନୁ ଅଶ୍ରୁ ଧାରା ଗଳେ ॥
ଧିକ ଏ ଜୀବନ ଥିବାର । ଯେବେ ନ ଜନ୍ମିଲା କୁମର ॥
ଦରିଦ୍ର ସପୁତ୍ରକ ସୁଖୀ । ଧନୀ ଅପୁତ୍ରିକ ଟୁପ ଦୁଃଖୀ ॥
ଏମନ୍ତ ମନେ ବିଚାରିଲା । ଘର ଯେ ବାହାର ହୋଇଲା ॥
ଛାଡି ନଗର ଜନପଦ । ଆବର ସକଲ ସମ୍ପଦ ॥
ପଶିଲା ଘୋରବନେ ଯାଇଁ । ମନୁଷ୍ୟ ଗତି ଯହିଁ ନାହିଁ ॥
କ୍ରମଶଃ ଅଗ୍ରସର ହେଲା । ପ୍ରାଣ ତେଜିବା ସ୍ଥିର କଲା ॥
ରଜନୀ ପ୍ରଭାତ ହୋଇଲା । ନିର୍ମଳା ଶଯ୍ୟାରୁ ଉଠିଲା ॥
ଦାସୀଏ ଘେନି ସ୍ୱର୍ଣ୍ଣ ଝାଲ । ପୂରିଛି ସୁବାସିତ ଜଳ ॥
ମୁଖ ପଖାଳ ସାଆନ୍ତାଣୀ । ଡାକନ୍ତି କହି ମଞ୍ଜୁ ବାଣୀ ॥
ନିର୍ମଳା ମୁଖ ଧୋଇ କଲେ । ଘରର ଚରଚ ବୁଝିଲେ ॥
ପ୍ରଭାତୁ ଦେବ ଦରଶନ । ସ୍ୱାମୀ କରନ୍ତି ପ୍ରତିଦିନ ॥
ଦ୍ୱି ଘଡି ମଧ୍ୟରେ ଫେରନ୍ତି । ଗୃହରେ ପ୍ରବେଶ କରନ୍ତି ॥

ଯଥା ସମସ୍ତ ହେଲା ଶେଷ । କି କାର୍ଯ୍ୟ ଅଛି କି ବିଶେଷ ॥
ସ୍ନାନର ବେଳ ଗଡ଼ି ଗଲେ । ସ୍ୱାସ୍ଥ୍ୟ ହାନି ହେବ ବୋଇଲେ ॥
ଭୃତ୍ୟମାନଙ୍କୁ ଆଜ୍ଞା ଦେଲେ । ସ୍ୱାମୀଙ୍କୁ ଡ଼ାକରେ କହିଲେ ॥
ଦେବାଳୟରେ ଦାସ ଦାସୀ । ଖୋଜିଲେ ଚତୁର୍ଦ୍ଦିଗେ ପଶି ॥
ନଗରର ଗୃହମାନଙ୍କରେ । ଖୋଜି ନ ପାଇଲେ ସେଠାରେ ॥
ନିଜ ମନ୍ଦିର ଚତୁପାଶେ । ଖୋଜିଲେ ମନର ବିରଷେ ॥
ନେଉଟି ଗୃହ କର୍ତ୍ତ୍ରୀଠାରେ । ଗୁହାରି କଲେ ଧାଇକାରେ ॥
ଶୁଣିଣ ନୈରାଶ୍ୟ ବାଣୀ । ନିର୍ମଳା ଲୁଟିଲେ ଧରଣୀ ॥
ବକ୍ଷରେ କରି କରାଘାତ । ଭୂମିରେ ପିଟିଲେ ସେ ମାଥ ॥
ଭୂମିରେ ପଡ଼ି ଗଡ଼ାଗଡ଼ି । ଉଚ୍ଚରେ କୋଲାହଳ ଛାଡ଼ି ॥
ହେ ସ୍ୱାମୀ ଛଡ଼ି ଗଲ କାହିଁ । ମୁଁ କିଛି ଦୋଷ କରି ନାହିଁ ॥
ଧନ ସମ୍ପତ୍ତି ହାତୀ ଘୋଡ଼ା । କାହିଁରେ ଆଉ ହେବ ଲୋଡ଼ା ॥
ପୋଡ଼ା ଅଦୃଷ୍ଟ ମୋର ଅତି । ନାହାନ୍ତି ସନ୍ତାନ ସନ୍ତତି ॥
ବିଶ୍ୱ ହେଲା ବିଷ ତୁଲ୍ୟ । ମୋ ପକ୍ଷେ କିଛି ନାହିଁ ମୂଲ୍ୟ ॥
କାନ୍ଦି କାନ୍ଦି ମୂର୍ଚ୍ଛିତ ହୋଇ । ପୁଣି ସଂଜ୍ଞା ଲଭି କାନ୍ଦଇ ॥
ନିର୍ମଳା ବିଳାପ ଶୁଣିଣ । କାନ୍ଦିଲେ ବନ ପଶୁଗଣ ॥
ଶିଶିର ବିନ୍ଦୁପାତ ଛଳେ । ବୃକ୍ଷେ ଭିଜିଲେ ଅଶ୍ରୁଜଳେ ॥
ପ୍ରଭାକରର ପୋଷା ପଶୁ । ନୟନୁ ଗଡ଼ାଇଲେ ଅଶ୍ରୁ ॥
କୁଞ୍ଜର ପଞ୍ଜରୁ ବାଗିଲା । ଯହୁଁ ଦାନା ପାଣି ଛାଡ଼ିଲା ॥
ଖରଗାମୀ ହୟ ଅଶ୍ୱଗଣ । କେ କହୁ ତାଙ୍କର କଷଣ ॥
ଖାଇଲେ ନାହିଁ ଦାନା ପାଣି । ପ୍ରଭାକରଙ୍କୁ ମନେ ଗୁଣି ॥
ଗାଈଏ ହମ୍ବା ରଡ଼ି ଦେଇ । ଖୋଜନ୍ତି ଚତୁର୍ଦ୍ଦିଗ ଚାହିଁ ॥
ସମସ୍ତଙ୍କ ଜୀବନ ଶକ୍ତି । ହେତୁ ପ୍ରଭାକର ଅଛନ୍ତି ॥
ସେ ପ୍ରଭାକରର ବିହୀନେ । ପଶୁ ଭାଳିଲେ ରହି ଧ୍ୟାନେ ॥
ନିର୍ମଳା ଉଠେ ପୁଣି ପଡ଼େ । କ୍ଷଣ କ୍ଷଣକେ ରବ ଛାଡ଼େ ॥
ହେ ସ୍ୱାମୀ ନିରାଶ୍ରୟ ମୁହିଁ । କେମନ୍ତେ ପ୍ରାଣେ ବଞ୍ଚିବଇଁ ॥
ସୁଯୋଗ୍ୟ କର୍ମଚାରୀ ମିଳି । ସାନ୍ତ୍ୱନା ଦେଲେ ନାନା ଭଳି ॥

କ୍ଷାନ୍ତ ହୁଅ ମାତ ବୋଇଲେ । ଦୂତ ଦେଶେ ଦେଶେ ପେଶିଲେ
ଅଙ୍ଗ, ବଙ୍ଗ କଳିଙ୍ଗ ଦେଶ । ଗଁରେ ଯାଇ ଆଣ ସନ୍ଦେଶ ॥
ମାସକେ ଫେରି ଯେ ଆସିବ । ଅନ୍ୟଥା ଶାସ୍ତି ଯେ ପାଇବ ॥
ପ୍ରାଚୀନ ଯୋଗ୍ୟ କର୍ମଚାରୀ । ଚଳାଇଲେ ଯେ ସୌଦାଗରୀ ॥
ସଉଦାଗର ପତ୍ନୀ ଏକା । ଦୂତ ଫେରିବାକୁ ପ୍ରତୀକ୍ଷା ॥
ଦେଖେଣ ସନ୍ତପ୍ତ ପ୍ରଭାକର । ମରିବା କଥା କଲା ସ୍ଥିର ॥
ଏକ ବନରୁ ଆନ ବନ । ଦୁଃଖରେ କରଇ ଗମନ ॥
ମନକୁ ପଛୁ ପାଦେ ଛନ୍ଦ । ପଦଚଳଇ କାନ୍ଦ କାନ୍ଦ ॥
ପ୍ରଭାକରର ଏ ବିକଳ । ଜାଣିଲେ ପ୍ରଭୁ ଆଦିମୂଳ ॥
ମୃଗିଣୀ ଆର୍ତ୍ତବାଣୀ ଶୁଣି । ଉଦ୍ଧରିଲେ ଯେ ଚକ୍ରପାଣି ॥
ଗଜ ଡାକିଲା ବିକଳରେ । ନକ୍ରକୁ ଛେଦିଲେ ଚକ୍ରେ ॥
ଦ୍ରୌପଦୀ ଡାକିଲା ବିକଳେ । ଦୁର୍ଯ୍ୟୋଧନର ସଭା ତଳେ ॥
ଅସଂଖ୍ୟ ବସ୍ତ୍ର ତାକୁ ଦେଲେ । ତା ଲଜ୍ଜା ନିବାରଣ କଲେ ॥
ଭକ୍ତ ବେଦନା ନ ସହନ୍ତି । ଘୋର ବିପତ୍ତିରୁ ତାରନ୍ତି ॥
ଶିବଙ୍କ ସ୍ମରଣ କରନ୍ତେ । ଶିବ ମିଳିଲେ ସେ ଅରତେ ॥
ଭକ୍ତ ଡାକୁଛି ଆର୍ତ୍ତସ୍ୱରେ । ଚଳ ହେ ଯିବାଟି ସତ୍ୱରେ ॥
ତୁରିତେ ବିଳମ୍ବ ନ କର । ପ୍ରାଣ ତେଜିବ ପ୍ରଭାକର ॥
ବୃଦ୍ଧ ବ୍ରାହ୍ମଣ ରୂପ ଧରି । ମର୍ତ୍ତ୍ୟେ ଆସିଲେ ହର ହରି ॥
ଗୋଟିଏ ଗୌର ଆର କଳା । କଣ୍ଠେ ଶୋଭେ ରୁଦ୍ରାକ୍ଷମାଳା ॥
ପୁଷ୍କରିଣୀଏ ଭିଆଇଲେ । ତାଁ ତଟେ ବଟେକ ସ୍ଥାପିଲେ ॥
ତା ଛାୟାତଳେ ଦୁଇଜଣ । ବସିଲେ ଆସନ ପାତିଣ ॥
ପୁଷ୍କରିଣୀର ଶୋଭା ଦେଖି । ନୟନ ମନ ଯିବ ଲାଖି ॥
ଘାଟ ଫଟିକ ପ୍ରସ୍ତରରେ । ବନ୍ଧା ହୋଇଛି ସୁଠାମରେ ॥
ହଂସ ସାରସ କାରଣ୍ଡବା । ଖେଳନ୍ତି ତହିଁ ସନ୍ଧ୍ୟା ଦିବା ॥
ମଧୁ ମକ୍ଷିକାଙ୍କ ଗୁଞ୍ଜନ । କରୁଛି ମାନସ ରଞ୍ଜନ ॥
ଶୁକ ପିକ ଡାହୁକମାନେ । କୁହୁ କରନ୍ତି ଏକ ତାନେ ॥
ନୀଳାଭ ସ୍ୱଚ୍ଛତର ନୀର । ପୂରି ରହିଛି ସରୋବର ॥

ବକାଳୀ ବସି ସ୍ଥାନେ ସ୍ଥାନେ । ସଫରୀ କରେଖନ୍ତି ସ୍ନାନେ ॥
ପ୍ରଭାକରର ବାଟେ ସେହି । ପୋଖରୀ ତୀରକୁ ଅଇଲ ॥
ସହଜେ ଗ୍ରୀଷମ କାଳ । ମାର୍ତ୍ତଣ୍ଡ କିରଣ ପ୍ରବଳ ॥
ଅଗମ୍ୟ ଯେଉଁ ବନସ୍ଥଳେ । ପୋଖରୀ ହେଲା କି ପ୍ରକାରେ ॥
ମନୁଷ୍ୟ ଗତାଗତ ନାହିଁ । ପୋଖରୀ ଏ ସ୍ଥାନେ କିମ୍ପାଇ ॥
ମନରେ ଗୁଣି ସୌଦାଗର । ପ୍ରବେଶ ପୋଖରୀ ଭିତର ॥
ଦେଖି ଘାଟର ପରିପାଟି । ଆନନ୍ଦ ତା ମନେ ପ୍ରକଟି ॥
ପୋଖରୀ ଶୋଭା ଦେଖି ଦେଖି । ବଟ ମୂଳେ ପଡିଲା ଆଖି ॥
ଦେଖିଲା ବୃଦ୍ଧ ଯେ ବ୍ରାହ୍ମଣ । ବସି ଅଛନ୍ତି ଦୁଇ ଜଣ ॥
ବିସ୍ମିତ ଅଧିକ ହୋଇଲା । ବଟ ମୂଳକୁ ଚାଲିଗଲା ॥
ପଡି ତାହାଙ୍କ ପାଦତଳେ । ପ୍ରଶ୍ନ କରିଲା ତାଙ୍କୁ ବୋଲେ ॥
ଅଗମ୍ୟ ସ୍ଥାନ ଏହି ବନ । କାହୁଁ ଏଥକୁ ଆଗମନ ॥
ଦେଖି ତୁମ୍ଭର ଶୁଷ୍କ ମୁଖ । ମୋ ମନେ ହୁଏ ବଡ଼ ଦୁଃଖ ॥
ନିତ ସେ ଅତିଥି ସତ୍କାର । କରଇ ହୋଇଣ ତତ୍ପର ॥
ଅନାହାରୀ ବ୍ରାହ୍ମଣ ଦେଖି । ତା ଦୁଃଖ କେ ପାରିବ ଲେଖି ॥
ଏଥେ ମୁଁ ଅଟେ ନିରୁପାୟ । କାହୁଁ ପାଇବି ଆହାରୀୟ ॥
ବ୍ରାହ୍ମଣେ ଆଶୀର୍ବାଦ କରି । କୋମଳ ବଚନ ଉଚ୍ଚରି ॥
ବାବୁ ହେ କହୁଁଛୁ ପ୍ରତ୍ୟକ୍ଷ । ତୁମ୍ଭର ଶୁଖି ଅଛି ମୁଖ ।
ଏ ବନ ଭୂମିରେ କିମ୍ପାଇଁ । ବୁଲୁଛ ନିରାଶ୍ରୟ ହୋଇ ॥
କାହୁଁ ଅଇଲ କାହିଁ ଗୃହ । ସଂଶୟ ତେଜି ସତ୍ୟ କୁହ ॥
ଗୁପତ କିଛିହିଁ ନ କର । ପାତକ ହୋଇବ ଅପାର ॥
ଏମନ୍ତ ଶୁଣି ସୌଦାଗର । କହିଲା ଯୋଡି ବେନିକର ॥
ବାରାଣସୀରେ ମୋର ଘର । ମୁଁ ଅଟେ ଏକ ସୌଦାଗର ॥
ମୋ ନାମ ଅଟେ ପ୍ରଭାକର । ଦେବତା ବ୍ରାହ୍ମଣ କିଙ୍କର ॥
ପତ୍ନୀର ନାମଟି ନିର୍ମଳା । ପାଇଛି କମଳାର କଳା ॥
ସମ୍ପତ୍ତିରେ ମୋ ସୀମା ନାହିଁ । ମର୍ତ୍ତ୍ୟେ ମୁଁ କୁବେର ବୋଲାଇ ॥
ଏବେ ସମ୍ପତ୍ତି ଅକାରଣ । କୋଳେ ନ ଥିବାରୁ ନନ୍ଦନ ॥

ଅପୁତ୍ରି ହୋଇ ମୁଁ ମରିବ । ପୁନ୍ନାମ ନରକେ ପଡ଼ିବ ॥
ମନେ ହୋଇଲା ଗୁରୁଚିନ୍ତା । ଛାଡ଼ିଲ ଗୃହାଶ୍ରମେ ଆସ୍ଥା ॥
ମନେ ମୁଁ କରିଅଛୁ ଥୟ । ଏ ପ୍ରାଣ ତେଜିବ ନିଶ୍ଚୟ ॥
ଅନନ୍ତ ପ୍ରଭାକର କାନ୍ତ । ଦେଖିଲେ ଧରିବର୍ଣ୍ଣ ଛବି ॥
ଚିନ୍ତା ଯା ଦେହରେ ପଶଇ । ଜୀଅନ୍ତା ପିଣ୍ଡକୁ ଦହଇ ॥
ପ୍ରଭାକରର ମୁଖଶଶି । ଯାଇଛି ଚିନ୍ତା ରାହୁ ଗ୍ରାସି ॥
ବ୍ରାହ୍ମଣେ ବୋଇଲେରେ ବାପ । ମନରୁ ଛାଡ଼ ଏବେ ତାପ ॥
ଏଠାରେ ସ୍ଥିରେ ବସ ବାବୁ । ଏଥିକି ଉପାୟ କହିବୁଁ ॥
ମାନସ ଦ୍ୱିନାଥଙ୍କ ମେଳା । ଭବସାଗରକୁ ଏ ଭେଳା ॥
ଅପୁତ୍ରି ପୁତ୍ର ଯେ ପାଇବ । ପାପୀର ପାପ କ୍ଷୟ ଯିବ ॥
ହୋଇବ ଅସୀମ ସମ୍ପତ୍ତି । ଦେଖିବୁ ବାବୁ ପୁଅ ନାତି ॥
ଅନ୍ଧ ପାଇବ ଚକ୍ଷୁ ଦାନ । ରୋଗୀର ହେବ ରୋଗ ହାନ ॥
ଆପଦ ବିପଦ ଶଙ୍କାରେ । ଦ୍ୱିନାଥ ଲୟ କଲେ ଥରେ ॥
ସର୍ବ ଆପଦ ଯିବ କ୍ଷୟ । ଦ୍ୱିନାଥେ ଦେବେଟି ଅଭୟ ॥
ମଛଛି ମୃତ ବତ୍ସା ଦୋଷ । ସମସ୍ତ ହୋଇବ ନିର୍ଦ୍ଦୋଷ ॥
ଦ୍ୱିନାଥ ମେଳା ଯେ କରିବ । ବହୁନ ଫଳ ସେ ପାଇବ ॥
ଦ୍ୱିନାଥ ବୋଲି ଯେ ଠାକୁର । ସାକ୍ଷାତେ ପ୍ରଭୁ ହରିହର ॥
ତହୁଁ ପଚାରେ ସୌଦାଗର । କୁହ ହେ ପୂଜାର ବେଭାର ॥
କେଉଁ ବିଧିରେ ପୂଜା ହେବ । କି ଦ୍ରବ୍ୟ ତହିଁକି ଲାଗିବ ॥
କହନ୍ତି ବ୍ରାହ୍ମଣ ଗୋସାଇଁ । ପୂଜାଟି କଠିଲ ନୁହଇଁ ॥
ପୀଢ଼ା ଖଣ୍ଡିଏ ଆଣି କରି । ଧୋଇବ ଦେଇ ଶୁଦ୍ଧ ବାରି ॥
ଆସନ ତହିଁ ବିଛାଇବ । ଲିପା ସ୍ଥାନରେ ରଖି ଦେବ ॥
ଯଦି ଆସନ ନ ମିଳିବ । ଦୂର୍ବାକୁ ଆସନ କରିବ ॥
କଳସ ଗୋଟିଏ ସ୍ଥାପିବ । ତହିଁରେ ଆମ୍ବ ଡାଳ ଦେବ ॥
ମାଟିରେ ଶିବ ଲିଙ୍ଗ କରି । ଶ୍ରୀଫଳ ଶ୍ରୀବିଷ୍ଣୁ ବିଗ୍ରହ ॥
ପାଇଲେ ଶାଳଗ୍ରାମ ଶିଳା । ଶ୍ରୀଫଳ ନ ହୋଇବ ଲୋଡ଼ା ॥
ଆସନ ପରେ ବସାଇବ । ସ୍ନାନ ମାର୍ଜ୍ଜନା କରାଇବ ॥

ବସ୍ତ୍ର ନ ଥିଲେ ସୂତ୍ରଯୋଡ଼ । ଅର୍ପଣ କର କରଯୋଡ଼ ॥
ଦୀପ ଗୋଟିଏ ବସାଇବ । ଗନ୍ଧ ଚନ୍ଦନ ଯେ ଅର୍ପିବ ॥
ତଦନ୍ତେ ନୈବେଦ୍ୟ ବ୍ୟବସ୍ଥା । ତହିଁକି ନ କର ହେ ଚିନ୍ତା ॥
ଜଳ ତୁଳସୀ ଭକ୍ତି ଯୋଗ । ସାତ୍ତ୍ୱିକ ପୂଜାର ଏ ମାର୍ଗ ॥
ପଞ୍ଚ ସପ୍ତ ଉପଚାର । ପ୍ରୀତି ବିହୀନେ ଅନାଦର ॥
ପ୍ରଭୁ କହନ୍ତି ମନେ ଜାଣ । ଏଥିରେ ଶାସ୍ତ୍ର ପ୍ରମାଣ ॥
ତଣ୍ଡୁଳ କଣା ଯେ ଅମୃତ । ଅର୍ପିଲେ ଭକ୍ତ ରସାପ୍ଲୁତ ॥
ସଂସାର ମଧ୍ୟେ ଯେତେ ଦ୍ରବ୍ୟ । ଯାହାଙ୍କଠାରୁ ଉଦ୍ଭବ ॥
ନିଜସ୍ୱ କି ପଦାର୍ଥେ ତୋର । ଅଛି ତୁ କର ହେ ବିଚାର ॥
ପୂଜାର୍ଥେ ଯା କିଛି ଆଣିବୁ । ସବୁ ତ ତାଙ୍କର ଜାଣିବୁ ॥
ତାଙ୍କ ପଦାର୍ଥେ ତାଙ୍କୁ ପୂଜା । ନାହିଁଟି ନୁହେ କି ଅବୁଝା ॥
ତୋର କେବଳ ପ୍ରୀତି ଭକ୍ତି । ଚରଣେ ଅର୍ପ ଯଥା ଶକ୍ତି ॥
ଲୌକିକ ପୂଜାର ବେଭାର । ବିସ୍ତୃତ କର ହେ ସମ୍ଭାର ॥
ଅଭାବେ ଖଇ ବା ଉଖୁଡ଼ା । ବିମୁକ୍ତି ହୋଇବଟି ଲୋଡ଼ା ॥
କଦଳୀ ପଦେକ ପାଇବ । ତାପରେ ତାକୁ ଥୋଇ ଦେବ ॥
ତୁଳସୀ ଦଳ ବିଷ୍ଣୁ ଅର୍ଥେ । ବିଲ୍ୱଦଳ ଶିବ ନିମନ୍ତେ ॥
ଆଗୁଁ ମନେ କରି ରଖିବ । ବିଧିମତେ କର ନୈବେଦ୍ୟ ॥
ବିଷ୍ଣୁଙ୍କୁ ତୁଳସୀ ଦଳରେ । ନୈବେଦ୍ୟ ଦେବ ବିଧାନରେ ॥
ବିଲ୍ୱ ଦଳରୁ ହସ୍ତେ ଧରି । ପ୍ରସାଦ ଶିବଙ୍କୁ ବିତରି ॥
ଶିବ ଯେ ମହା ବଇଷ୍ଣବ । ବିଷ୍ଣୁ ପ୍ରସାଦେ ସ୍ନେହୀ ଭାବ ॥
ପୂଜାନ୍ତେ କଥା ଯେ ପଠନ । ଶୁଣିବ ଦେଇ ମନ କର୍ଣ୍ଣ ॥
ମନ ପ୍ରକୃତି କରି ଠୂଳ । ଧ୍ୟାନ କରିବ ଆଦ୍ୟମୂଳ ॥
ଅନନ୍ୟ ମନସ୍କ ଯେବେ ହେବ । ଦ୍ୱିଜନାଥ ଦୋହୃଷ୍ଟ ହୋଇବ ॥
ସକଳ ଧର୍ମ ନାଶ ଯିବ । ଅପରାଧ ବହୁତ ଅର୍ଜିବ ॥
ପ୍ରସାଦ ଜନେ ବାଣ୍ଟି ଦେବ । କଣିକା ଗର୍ଭକୁ ଯେପିବ ॥
ପୂଜାର ବିଧାନ ଶୁଣିବ । ସାଷ୍ଟାଙ୍ଗେ ପ୍ରଣିପାତ ହେବ ॥
ବ୍ରାହ୍ମଣେ ଆଶୀର୍ବାଦ କରି । ବୋଲିଲେ କରୁଣ ଆତରି ॥

ପୋଖରୀ ଭିତରକୁ ପଶ । ଏହି ବାରୁ ସୌଦାଗର ଶିଷ ॥
ବେଳ ତ ହେଲାଣି ଅପାର । ସ୍ନାନ ମାର୍ଜନ ଏବେ ସାର ॥
ପ୍ରଭାକରଙ୍କ ସ୍ନାନେ ଗଲେ । ବ୍ରାହ୍ମଣେ ଅନ୍ତର୍ଦ୍ଧାନ ହେଲେ ॥
ସ୍ନାନ ସାରିଣ ସୌଦାଗର । ମିଳିଲା ସେ ବୃକ୍ଷ ମୂଳର ॥
କେହି ତ କେଉଁଆଡ଼େ ନାହିଁ । ବୃଦ୍ଧ ବ୍ରାହ୍ମଣେ ଗଲେ କାହିଁ ॥
ଚତୁର୍ଦ୍ଦିଗକୁ ଅନାଇଲା । କାହିଁ ସନ୍ଧାନ ନ ପାଇଲା ॥
ଭାବିଲା ଦ୍ୱିନାଥ ଏ ଦୁଇ । ଈଶ ଛଳିଲ ହସ୍ତେ ପାଇଁ ॥
ଛାର ସ୍ୱପ୍ନରେ ମନ ଦେଲ । ମୋକ୍ଷ ପଦକୁ ମୁଁ ହୁଡିଲ ॥
ବିଷୟ ବଶେ ରତ ହୋଇ । ଯେ ପ୍ରାଣୀ ମୋକ୍ଷକୁ ଛାଡ଼ଇ ॥
ସଂସାର ପଙ୍କେ ଲାଗି ରହି । ଅଧମାଧମ ସେ ବୋଲାଇ ॥
ବୃଦ୍ଧ ବ୍ରାହ୍ମଣ ଦୁଇ ଜଣ । ହୋଇଲେଣି ତ ଅନ୍ତର୍ଦ୍ଧାନ ॥
କାନ୍ଦ କୁନ୍ଥାଇ ତହୁଁ ଉଠି । ଘରକୁ ଗଲା ସେ ନେଉଟି ॥
ବାରାଣସୀରେ ପହଞ୍ଚିଲା । ନିଜ ମନ୍ଦିରେ ବିଜେ କଲା ॥
ଅମାତ୍ୟଗଣ ପୁରବାସୀ । କହିଲେ ବଚନ ଆଶ୍ୱାସି ॥
ଅନ୍ତଃପୁରେ ନିର୍ମଳା ସତୀ । କାତର ଭାବେ ବସିଛନ୍ତି ॥
ଦାସୀ ଯେ ପରିଚାରୀ ଗଣ । ଧାମନ୍ତି ଉଦବେଗ ମନ ॥
ଶୁଣ ଗୋ ନିରମଳା ମାତ । ଗୃହେ ଫେରିଲେ ଆମ୍ଭ ତାତ ॥
ନିର୍ମଳା ସ୍ୱପ୍ନ ପ୍ରାପ୍ତ ମଣି । ବିସ୍ମିତ ହେଲା କଥା ଶୁଣି ॥
ମୁହୁଗୁଲିକୁ ଯେ ପେଷିଲେ । ତଥ୍ୟନ୍ତି ବୁଝି ଆସ ବୋଲେ ॥
ମୁହୁଗୁଲି ଯେ ଫେରି ଆସି । କହିଲା ବଚନ ସମ୍ଭାଷି ॥
ଆସିବା କଥା ଅଟେ ସତ । ଶୁଣ ମୋ ବଚନ ଗୋ ମାତ ॥
ସ୍ୱତଙ୍କ ଗୀରକୁ ଅପେକ୍ଷା । କଲା ପ୍ରାପ୍ତ କରି ପ୍ରତୀକ୍ଷା ॥
ନିର୍ମଳା ଅତି ଛନ ଛନ । ଦରିଦ୍ର ପାଇଲା କି ଧନ ॥
କାନ୍ତ ଫେରିବା ଯେ କହିଲା । କର୍ଣ୍ଣେ କି ଅମୃତ ସିଞ୍ଚିଲା ॥
ଅମୂଲ୍ୟ ହାର ଗୋଟି ଗୋଟି । ଦାସ ଦାସୀଙ୍କୁ ଦେଲା ବାଣ୍ଟି ॥
ଉତ୍କଣ୍ଠା କେ ବର୍ଣ୍ଣି ପାରିବ । ବର୍ଣ୍ଣିଲେ ପୋଥି ବଡ଼ ହେବ ॥
ରଜନୀ ପହଡ଼ଙ୍କ ପରେ । ପ୍ରଭାକର ଯେ ଅନ୍ତଃପୁରେ ॥

କେ କହୁ ନିର୍ମଳା ଆନନ୍ଦ । ବଚନ କହେ ଗଦ୍‌ଗଦ ॥
କାନ୍ଦଇ ହରଷ କାନ୍ଦଣା । ପଡ଼ିଶୀକର କଲେ ସାନ୍ତ୍ୱନା ॥
ନ କାନ୍ଦ ନ କାନ୍ଦ ଗୋ ସଖି । ସୁସମାଚାର ଆଣି ଛୁଇଁ ॥
ଦ୍ୱିନାଥ ମେଳାଁ ଆଗେ କାଁର । ମନରେ ଆନ ନ ବିଚାର ॥
କରି ପୂଜାର ଆୟୋଜନ । ଦମ୍ପତି କଲେକ ପୂଜନ ॥
ଯଥା ବିଧିରେ ପୂଜା କରି । ଭକ୍ତିରେ ତୋଷି ହରହରି ॥
ପ୍ରସାଦ ପାଇ ତୃପ୍ତ ହେଲେ । ସାହୁ ପଇସା ବାଣ୍ଟି ଦେଲେ ॥
ଦ୍ୱିନାଥ ପ୍ରଭୁ କୃପା କଲେ । ନିର୍ମଳା ଗର୍ଭବାସ ହେଲେ ॥
ଧନକୁ ଧନ ଯାଏ ବଢ଼ି । ଗର୍ଭେ ବାଳକ ବୃଦ୍ଧି ପାଇ ॥
ନବମ ମାସ ପ୍ରବେଶିଲା । ସାଧ ଭକ୍ଷଣେ ମନ ଗଲା ॥
ଶୁଭ ତିଥି ବାର ନକ୍ଷତ୍ର । ଯୋଗ କରଣ ଯେ ପବିତ୍ର ॥
ଜ୍ୟୋତିଷାଚାର୍ଯ୍ୟେ ଖଡ଼ି ଧରି । ସାଧିଲେ ମନ ସ୍ଥିର କରି ॥
ମାହେନ୍ଦ୍ର ବେଳା ଉପଗତ । ନବ ବସ୍ତ୍ରରେ ଅଲଙ୍କୃତ ॥
ହୋଇଲେ ନିର୍ମଳା ସୁନ୍ଦରୀ । ବାଜିଲା ଶଂଖ ଯେ ମହୁରି ॥
ନାରୀଏ ହୁଳହୁଳି ଦେଲେ । ନିର୍ମଳା ମଙ୍ଗଳ ପାଞ୍ଚିଲେ ॥
ଦେବ ପୂଜନ ଆରାଧନ । ବ୍ରାହ୍ମଣ ବୈଷ୍ଣବ ଭୋଜନ ॥
ଜ୍ଞାତି କୁଟୁମ୍ବ ଆମନ୍ତ୍ରିଲେ । ଆକଣ୍ଠ ଭୋଜନ ସେ ଦେଲେ ॥
ନାନାପ୍ରକାର ସାଧ ସଜ୍ଜା । ପାକ, ଅପାକ, ପକ୍ୱ କଞ୍ଚା ॥
ଖୀରି ଗୁଡ଼ୁଲି ଭଜା ସଙ୍ଗେ । ଖଣ୍ଡି ନଡଆ ଅନୁରାଗେ ॥
ମିଳାଇ ଦିଅନ୍ତି ସଖୀଗଣ । ନିର୍ମଳା କରନ୍ତି ଚର୍ବଣ ॥
ସଜ ଛେନା ଶର୍କରା ଯୋଗେ । ସୁଗନ୍ଧ ଦ୍ରବ୍ୟ ଘିଅଁ ସଙ୍ଗେ ॥
ମିଶାଇ କରି ଉପାଦେୟ । ଭୁଞ୍ଜାନ୍ତି ହୋଇଣ ସଦୟ ॥
ଲଡୁ ଖଜା ଛେନା ପାୟସ । ମନକୁ କରଇ ଆକର୍ଷ ॥
ସୁଗନ୍ଧି ଦ୍ରବ୍ୟେ ଜର ଜର । ଝରଇ ସୁବାସ ମଧୁର ॥
ଆଘ୍ରାଣେ ରସନା ଶ୍ରବଇ । ଭୋଜନେ ମନ ତୃପ୍ତ ହୋଇ ॥
ପୂରି ଅମୃତ ରସାବଳୀ । କାନିକା ଖିରି ଯେ ଖିରୁଡ଼ି ॥
ସୁଗନ୍ଧ ଶାଳୀ ଅନ୍ନ ପୁଣି । ହୋଇଛି ସଜ ଯେ ଚୂଡ଼ାଣି ॥

ଭାଙ୍କି ନାଫେରି ଯେ ମନ୍ଥର । କୋଚ୍ଛ ପକାରେ ଅସୁମାର ॥
ଦହଣା ଆମ୍ବିଲ ଶାକରା । ବ୍ରୀହି ବର୍ଗ ଦ୍ବିଗ କାକରା ॥
ବୃନଭଣ୍ଡିଆ ଶାକରେ ବଡ । ମୌରାଳୀ ମାଛ ଗଡ଼ାଗଡ ॥
ରୋହ ଭାକୁର ମୁଣ୍ଡା ମୁଣ୍ଡା । ଭୋଜନେ ଚିତ୍ତ ହେଲା ଥଣ୍ଡା ॥
ପାଚିଲା ଆମ୍ବ ଯେ ପଣସ । କମଳା ଲେମ୍ବୁ ଅନାରସ ॥
ନାଲି ନଡଆ ଉଷ୍ମ ମୁର୍ତ୍ତି । ଜିଲେପି ପାକରୁ ଅଜାଡ ॥
ସାହୁ ପଡସା ବନ୍ଧୁଜନ । ସାଧ ଖୁଆନ୍ତି ପ୍ରତିଦିନ ॥
ଧନଙ୍କ ଧନୀ ଗର୍ଭ ଭାଗି । ଜଗି ବସନ୍ତି ସହଚରୀ ॥
ଦଶମାସ ଯେ ପୂର୍ଣ୍ଣ ହେଲା । ଗର୍ଭବେଦନା ପ୍ରବେଶିଲା ॥
ଜନ୍ମିଲା ଅପୂର୍ବ ନନ୍ଦନ । ରୂପେ ଅଲୋକିତ ଭବନ ॥
ଦ୍ୱିନାଥ ପ୍ରଭୁଙ୍କ ପଦ୍ମରେ । ଶୁଆଇ ଦେଲେ ହର୍ଷଭରେ ॥
ଅପୂର୍ବ ଘରେ ପୁତ୍ରହେଲା । ନଗର ଉଛୁଳି ପଡ଼ିଲା ॥
ନନ୍ଦରଘରେ କିବା ଆଜ । ଜନ୍ମିଅଛନ୍ତି ବ୍ରଜରାଜ ॥
ଲାଗିଲା ଅର୍ଣ୍ଣ ବସ୍ତ୍ର ଦାନ । ଫିଟିଲା ଗନ୍ତାଘରମାନ ॥
କଳ୍ପତରୁଙ୍କ ପ୍ରଭାକର । କେକହୁ ଦାନର ବେଭାର ॥
ଦ୍ୱିନାଥ ପ୍ରଭୁ କଥାବଳି । ଭକ୍ତିରସ ଅମୃତଗୋଳି ॥
ସୁଜନେ ପିଅ ବାର ବାର । ବୈକୁଣ୍ଠ ପୁରକୁ ଏଦ୍ୱାର ॥
ବାଣାସୁର ରାଜ୍ୟ ମଧ୍ୟରେ । ସୈକତ-ଖଣ୍ଡ ସୀମାଠାରେ ॥
ସ୍ୱର୍ଣ୍ଣମୟ ପୁରରେ ବସି । ବଖାଣ କଲେ କାଶୀ-ବାସୀ ॥
ଉମା ଶ୍ୟାମା ଦୁର୍ଗା ଅନ୍ନଦା । ବରଦା ଆଦର ଶରଧା ॥
ବନ୍ଦୁ ଦ୍ୱିନାଥ ଶ୍ରୀଦିଁତଲେ । ତରିବେ ଭବଜଳୁ ହେଳେ ॥
ରବି ଜ୍ୟୋତି ଜ୍ୟୋତି ପ୍ରକାଶି । ସଂସାର ଘୋରତମ ନାଶି ॥
ଶରଣ ଦ୍ୱିନାଥ ଚରଣେ । ପଶନ୍ତୁ ସଦା ସ୍ଥିରମନେ ॥
ଉନିଶ ଅଷ୍ଟାବିଂଶ ସନ । ଦାଲ୍ଲୀଶ୍ବରଙ୍କ ଅବ୍ଦ ହେନ ॥
ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ ଦିନ । ପୁସ୍ତକ ହୋଇଲା ସମ୍ପୂର୍ଣ୍ଣ ॥

ଇତି ଶ୍ରୀଦ୍ୱିନାଥମେଳା ସମ୍ପୂର୍ଣ୍ଣ ।